ମହାମାନ୍ୟ ବିହାର ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ପ୍ରଶଂସିତ ଓ ପ୍ରାଇଜ୍ ଲାଇବ୍ରେରୀ ବହିରୂପେ ସ୍କୁଲରେ ବ୍ୟବହୃତ ହେବାପାଇଁ ଅନୁମୋଦିତ

# ବସନ୍ତରୋଗ ପ୍ରତିକାର ।

## A TREATISE ON SMALLPOX

SHOWING ITS CAUSE, PREVENTION,

AND TREATMENT.

**Compiled for use in the Primary Schools and Villages.**

BY

**S. NAYAK.**

Author of Balya-Sikhya-Pronali Treatise on Malaria, Cholera and Sisu-Palan &c.

Published under the authority of the Primary Education Committee.
BALASORE.

1927.

ଦ୍ୱିତୀୟ ସଂସ୍କରଣ । ମୂଲ୍ୟ ୦୵୧୦ ମାତ୍ର ।

# ଦ୍ୱିତୀୟ ସଂସ୍କରଣ ।

ଏହି ପୁସ୍ତକର ପ୍ରଥମ ସଂସ୍କରଣ ଅତିଶୀଘ୍ର ନିଃଶେଷିତ ହୋଇ ଯିବାରୁ ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେଲା । ପ୍ରଥମ ସଂସ୍କରଣରେ ଯେଉଁସବୁ ଭ୍ରମ ରହିଯାଇ ଥିଲା ତାହା ଏଥର ସଂଶୋଧନ କରି ଦେଇଅଛୁ ଓ କେତେକ ନୂତନ ବିଷୟ ସୁଦ୍ଧା ସଂଯୋଗ କରିଥିବାରୁ ଏହାର କଳେବର କିଞ୍ଚିତ ପରିମାଣରେ ବର୍ଦ୍ଧିତ ହୋଇଅଛି ଏବଂ ସେଥିଲାଗି ଏହାର ମୂଲ୍ୟସୁଦ୍ଧା ସାମାନ୍ୟ ବୃଦ୍ଧି କରାଗଲା । ବାଲେଶ୍ୱର ଡିଃ ବୋର୍ଡର ସ୍ୱାସ୍ଥ୍ୟ ପରିଦର୍ଶକ ସୁଯୋଗ୍ୟ ଡାଃ ଦାମୋଦର ମହାନ୍ତି M. B. ଏହାର ଆଦ୍ୟପ୍ରାନ୍ତ ପାଠକରି ଯଥେଷ୍ଟ ପ୍ରଶଂସା କରି ଅଛନ୍ତି, ସେଥିପାଇଁ ଆଶା କରୁଅଛୁ ପୂର୍ବ ସଂସ୍କରଣ ଠାରୁ ଏହି ସଂସ୍କରଣ ସାଧାରଣରେ ଅନେକ ଅଧିକ ଆଦୃତ ହେବ ଏବଂ ସମସ୍ତେ ଏହି ପୁସ୍ତକର ଖଣ୍ଡିଏ ଖଣ୍ଡିଏ ଆପଣା ଗୃହରେ ରଖିଲେ ଉପର୍ଯ୍ୟୁକ୍ତର ବିପଦରୁ ସହଜେ ରକ୍ଷା ପାଇ ପାରିବେ ।

ଗ୍ରନ୍ଥକାର ।

# ବସନ୍ତରୋଗ ପ୍ରତିକାର ।



ପ୍ରଶ୍ନ—ଓଲାଉଠା ପରି ଆମ୍ଭ ଦେଶର ଆଉ ଭୀଷଣ ଶତ୍ରୁ କିଏ ?

ଉତ୍ତର—ବସନ୍ତ ରୋଗ ।

ପ୍ରଶ୍ନ—ତାହାର ପ୍ରତିକାର କଣ ?

ଉତ୍ତର—ସେହି ଭୀଷଣ ଶତ୍ରୁର ଆକ୍ରମଣରୁ ରକ୍ଷା ପାଇବାର ଉପାୟ ଏହି ଗ୍ରନ୍ଥରେ ସ୍ପଷ୍ଟ କରି ଲେଖା ଯାଇଅଛି ।

ଆମ୍ଭମାନଙ୍କ ଦେଶରେ ଯେତେପ୍ରକାର ସଂକ୍ରାମକ, ମାରାତ୍ମକ ଓ ବହୁ ବ୍ୟାପକ ରୋଗ ଅଛି ତନ୍ମଧ୍ୟରେ ଓଲାଉଠା ପ୍ରଥମ ଓ ବସନ୍ତ ଦ୍ୱିତୀୟ ସ୍ଥାନ ଅଧିକାର କରିଅଛି । ଏହି ରୋଗଟା ବଡ଼ ସର୍ବନାଶୀଆ ଓ ଅତ୍ୟନ୍ତ କଷ୍ଟଦାୟକ । ଓଲାଉଠା ପରି ଏତେ ଶୀଘ୍ର ମୃତ୍ୟୁ ନ ଘଟିଲେ ସୁଦ୍ଧା ମୃତ୍ୟୁ ସଂଖ୍ୟା ବଡ଼ ଅଳ୍ପ ନୁହେଁ ଓ ଯେଉଁମାନେ ରୋଗ ମୁକ୍ତ ହୋଇ ବଞ୍ଚନ୍ତି ସେମାନେ ଅତିଶୟ କୁବର୍ଣ୍ଣ, ଅସୁନ୍ଦର ଓ ଅନେକେ ଚିରକାଳ ପାଇଁ ଅକର୍ମଣ୍ୟ ହୋଇ ଯାଆନ୍ତି । ଯୁବା ଓ ସବଳ ଲୋକମାନଙ୍କଠାରୁ ଛୁଆ ଓ ସ୍ତ୍ରୀଲୋକମାନେ ଅଧିକ ମରନ୍ତି । ଅନେକେ ଏକ କିମ୍ବା ଦୁଇ ଚକ୍ଷୁ ହରାଇ କଣା କିମ୍ବା ଅନ୍ଧ ହୋଇ ଯାଆନ୍ତି । କେହି କେହି ଚିରରୁଗ୍ଣ ଓ ଅଜୀର୍ଣ୍ଣ ରୋଗାକ୍ରାନ୍ତ ହୋଇ ଚିରକାଳ ସକାଶେ କୌଣସି କାର୍ଯ୍ୟକ୍ଷମ ହୁଅନ୍ତି ନାହିଁ । ଏହି ରୋଗ ଅତିଶୀଘ୍ର ବହୁ ବ୍ୟାପକ ହୋଇ ବହୁ ଲୋକଙ୍କର ମୃତ୍ୟୁ ଘଟାଏ ସେଥିପାଇଁ ଏହି ଭୟଙ୍କର ସଂକ୍ରାମକ ରୋଗକୁ ସମସ୍ତେ ଅତ୍ୟନ୍ତ ଭୟ କରନ୍ତି । ଆଜିକାଲି

ଏହି ରୋଗ ପ୍ରତି ସହର ଓ ଗ୍ରାମମାନଙ୍କରେ ଘର କରି ବସିଲାଣି । ପ୍ରତିବର୍ଷ ଓଲାଉଠା ସଙ୍ଗେ ସଙ୍ଗେ ବସନ୍ତ ଦୁଇ ଭାଇ ଓ ଭଉଣୀ ପରି ଆସି ଦେଖା ଦଅନ୍ତି, ଆଉ କିଏ କେତେ ଖାଇ ପାରିବ ଏପରି ବାଜି ମାରିଲା ପରି ଲୋକ ଧ୍ୱଂସ କରିବାକୁ ଆରମ୍ଭ କରନ୍ତି । ପୁଣି ପ୍ରତି ୫ ବର୍ଷକୁ ଥରେ ଏହିରୋଗ ଅତି ଭୟଙ୍କରରୂପ ଧାରଣ କରି ପ୍ରବଳ ଓ ବହୁବ୍ୟାପକ ହୁଏ ବୋଲି ଶୁଣା ଅଛି । ଏହିବର୍ଷ କଲିକତାରେ ଏହି ରୋଗ ଏତେ ପ୍ରବଳ ବେଗରେ ମାଡ଼ିଗଲା ଯେ ମାସକୁ ହଜାର ଲୋକ ମାରି ପଡ଼ିଲେ । ଆମ ଓଡ଼ିଶାରେ କଥା ଜଣା ନାହିଁ । ପ୍ରାୟ ସବୁ ସବଡିଭିଜନମାନଙ୍କରେ ଏ ରୋଗ ଦେଖା ଦେଲାଣି । କି ଉପାୟରେ ଏପରି ଭୟଙ୍କର ମାରାତ୍ମକ ଶତ୍ରୁର ଆକ୍ରମଣରୁ ରକ୍ଷା ପାଇବା ତାହା ଅନୁସନ୍ଧାନ ଓ ଶିକ୍ଷା କରିବା ପ୍ରତ୍ୟେକ ଲୋକଙ୍କର ସର୍ବାଗ୍ରେ କର୍ତ୍ତବ୍ୟ । ସରକାର ବାହାଦୁରଙ୍କ ଇଚ୍ଛା ଯେ ଗ୍ରାମବାସୀମାନେ ସମସ୍ତେ ମିଳି ଏ ବିଷୟରେ ମନୋଯୋଗୀ ହେଲେ ରୋଗକୁ ଦମନ କରାଯାଇ ପାରିବ । ମୋର ଅନୁରୋଧ ଏହି ଯେ ପ୍ରତ୍ୟେକ ଗ୍ରାମରେ କିମ୍ବା ସର୍କଲରେ ଶିକ୍ଷିତ ଭଦ୍ରଲୋକ, ପ୍ରେସିଡେଣ୍ଟ, ଶିକ୍ଷକ ଓ ଜମୀଦାରଙ୍କ ନାଏବମାନେ ମିଳି ଯଦି ଗୋଟିଏ ଗ୍ରାମ-ସଂସ୍କାର-ସମିତି ଗଠନ କରି କାର୍ଯ୍ୟରେ ପ୍ରବୃତ୍ତ ହେବେ ତେବେ ଦେଶର ପ୍ରକୃତ କଲ୍ୟାଣ ସାଧିତ ହେବ ।

ହରିବାବୁ ଦେଶର ଜଣେ ମାନ୍ୟଗଣ୍ୟ ଲୋକ । ଦେଶ ଓ ସମାଜର ଉନ୍ନତି ନିମନ୍ତେ ସେ ସର୍ବଦା ଚେଷ୍ଟା ଓ ପରିଶ୍ରମ କରନ୍ତି । ଦେଶରେ ଓଲାଉଠା ଓ ବସନ୍ତ ରୋଗ ଅତି ପ୍ରବଳ ହେବାରୁ ସେ ଦିନେ ବଡ଼ ଡାକ୍ତରଖାନାକୁ ଯାଇ ଡାକ୍ତର ସାହେବଙ୍କ ସଙ୍ଗେ ବହୁତ ଆବଶ୍ୟକୀୟ ବିଷୟରେ କଥୋପକଥନ କରିଥିଲେ । ଇତିପୂର୍ବେ ସେ ମେଲେରିଆ ଓ ଓଲାଉଠା ରୋଗ ପ୍ରତିକାର ସମ୍ବନ୍ଧେ ପରାମର୍ଶ କରି ବହୁମୂଲ୍ୟ

ଉପଦେଶମାନ ସଂଗ୍ରହ କରିଥିଲେ ; ସେସବୁ ଭିନ୍ନ ପୁସ୍ତକାକାରରେ ପ୍ରକାଶିତ ହୋଇଅଛି । ବର୍ତ୍ତମାନ ବସନ୍ତ ରୋଗ ପ୍ରତୀକାର ସମ୍ବନ୍ଧେ ଡାକ୍ତର ସାହେବ ଯେଉଁସବୁ ବହୁମୂଲ୍ୟ ଉପଦେଶ ଦେଇଥିଲେ ତାହା ନିମ୍ନରେ ଆଲୋଚନା କରାଗଲା ।

ହରବାବୁ ପଚାରିଲେ—ଡାକ୍ତର ସାହେବ ! ଓଲାଉଠାପରି ବସନ୍ତ ରୋଗ ସୁଦ୍ଧା ଆମ ସହରର ଗଳିଅଳିରେ ଓ ମୋଫସଲମାନଙ୍କରେ ମାଡି ଗଲାଣି ! ଓଲାଉଠା ପ୍ରତୀକାର ସମ୍ବନ୍ଧେ ଆମ୍ଭେମାନେ ଆପଣଙ୍କଠାରୁ ଯଥେଷ୍ଟ ଉପଦେଶ ପାଇଅଛୁଁ, ବର୍ତ୍ତମାନ ବସନ୍ତ ରୋଗ ସମ୍ବନ୍ଧେ ସେହିପରି ଉପଦେଶ ଦେବାକୁ ଅନୁରୋଧ କରୁଅଛୁ, ଅନୁଗ୍ରହ କରି କହିବା ହେଉନ୍ତୁ ।

ଡାକ୍ତର—ବସନ୍ତର କଥା କହିବାକୁ ଗଲେ ଆଗେ ବୁଝିବାକୁ ହେବ ଯେ ଏକପ୍ରକାର ବିଶେଷ ବିଷ ଶରୀର ମଧ୍ୟରେ ଶୋଷିତ ହୋଇ ଏହି ଭୟାନକ ସଂକ୍ରାମକ ରୋଗ ଉତ୍ପନ୍ନ କରେ । ଏହାକୁ ଦମନ କରିବାକୁ ଏବଂ ଏହାର ଆକ୍ରମଣରୁ ରକ୍ଷା ପାଇବା ନିମନ୍ତେ ଏକମାତ୍ର ପ୍ରଧାନ ଉପାୟ ଟୀକାନେବାର । କଲିକତାରେ ଏବର୍ଷ ଯେତେ ଲୋକ ବସନ୍ତ ରୋଗରେ ମଲେ ସେଥି ମଧ୍ୟରେ ଶିଶୁମାନଙ୍କ ମୃତ୍ୟୁସଂଖ୍ୟା ଅତ୍ୟନ୍ତ ଅଧିକ । ଏହା ଦେଖି ସ୍ୱାସ୍ଥ୍ୟ-ଡାକ୍ତର କହିଲେ ଟୀକା ନ ଦେବାରୁ ଏପରି ଘଟୁଅଛି । ସେଥିପାଇଁ ସରକାର ବାହାଦୁର ସର୍ବତ୍ର ବିନା ଖରଚରେ ଟୀକା ଦିଆ କରନ୍ତି । ଡିଷ୍ଟ୍ରିକ୍ଟ ବୋର୍ଡ ଓ ମିଉନିସିପାଲିଟୀ ଆପଣା ଇଲାକା ମଧ୍ୟରେ ବିନା ଖର୍ଚ୍ଚରେ ଟୀକା ଦେବାପାଇଁ ପ୍ରତିବର୍ଷ

ଟୀକାଦାରମାନଙ୍କୁ ନିଯୁକ୍ତ କରନ୍ତି । ଏଣୁ ଟୀକା ଦିଆ କାର୍ଯ୍ୟ ଯେତେ ବଢ଼ୁଥିବ ଓ ସଫଳ ହେଉଥିବ ବସନ୍ତ ରୋଗ ସେହି ପରିମାଣରେ ବିଦାୟ ନେଉଥିବ ।

ପ୍ରଶ୍ନ—ଯେଉଁମାନେ ଟୀକା ଦିଅନ୍ତି ସେମାନଙ୍କୁ କଣ କେବେହେଁ ବସନ୍ତ ହୁଏନାହିଁ ? ତେବେ ବସନ୍ତ ରୋଗରେ ଏତେ ଲୋକ ମରୁଅଛନ୍ତି କାହିଁକି ?

ଉତ୍ତର—ଟୀକା ନେଇଥିବା ଲୋକଙ୍କୁ ବସନ୍ତ ହୁଏନାହିଁ ଆଉ ଯଦି କୌଣସି କାରଣରୁ ହୁଏ ତେବେ ତାହା ମାରାତ୍ମକ ହୁଏ ନାହିଁ । କିନ୍ତୁ ଯେଉଁମାନେ ଟୀକା ନେଇ ନଥାନ୍ତି ଅଗେ ସେ ରୋଗ ସେମାନଙ୍କୁ ଧରେ, ଆଉ ଧରିଲେ ସେମାନେ ସଙ୍କଟାପନ୍ନ ହୁଅନ୍ତି ।

ପ୍ରଶ୍ନ—ଏ ଦେଶରେ କେତେପ୍ରକାର ଟୀକାର ପ୍ରଚଳନ ଅଛି ? ଓ ତାହା କି ପ୍ରକାର ?

ଉତ୍ତର—ଏ ଦେଶରେ ଦୁଇ ରକମ ଟୀକାର ବ୍ୟବହାର ଅଛି, ବିଲାତି ଟୀକା ସବୁଆଡ଼େ ଦିଆଯାଏ ଓ ସେଥିରେ କୌଣସି ଭୟର କାରଣ ନଥାଏ । କିନ୍ତୁ ଏହାଛଡ଼ା ଏକପ୍ରକାର ଦେଶୀ ଟୀକା ମୋଫସଲମାନଙ୍କରେ ଦିଆଯାଏ, ସେଥିରେ କିନ୍ତୁ ବଡ଼ ଭୟ ଥାଏ ଏବଂ ସେହି କାରଣରୁ ସେପରି ଟୀକା ପ୍ରାୟ କେହି ନେବାକୁ ଚାହାନ୍ତି ନାହିଁ । ବିଶେଷତଃ ଇଂରାଜୀ ଟୀକା ସର୍ବତ୍ର ଚଳିବାରୁ ମୋଫସଲରେ ଦେଶୀ ଟୀକାର ଆଉ ବିଶେଷ ପ୍ରଚଳନ ନାହିଁ । ବିଶେଷ ପରୀକ୍ଷା ଦ୍ୱାରା ଡାକ୍ତରମାନେ ସ୍ଥିର କରିଅଛନ୍ତି ଯେ ବସନ୍ତର ବିଷ ଅତ୍ୟନ୍ତ ସଂକ୍ରାମକ; ସହଜରେ ରୋଗୀର ନିଃଶ୍ୱାସ ପ୍ରଶ୍ୱାସ ଦେହରୁ ବାୟୁ ଦ୍ୱାରା ଚାରିଆଡ଼େ ପରିବ୍ୟାପ୍ତ ହୋଇଯାଏ ।

୧୮୦୦ ଖ୍ରୀଷ୍ଟାବ୍ଦର ଶେଷଭାଗରେ ଡାଃ ଜେନାର ଗୋ-ବୀଜ ଦ୍ୱାରା ଟୀକା ଦେବାର ପ୍ରଥା ପ୍ରଥମେ ଇଂଲଣ୍ଡରେ ପ୍ରଚଳିତ କରିଥିଲେ । ତଦ୍ଦ୍ୱାରା ମନୁଷ୍ୟ ଶରୀରରେ ଭବିଷ୍ୟତରେ ଆଉ ବସନ୍ତ ହେବାର ଭୟ ନ ଥାଏ । ଯେଉଁଦିନୁ ଏହିପରି ବାଲ୍ୟଟୀକା ଦେବା ଇଂଲଣ୍ଡରେ ପ୍ରଚଳିତ ହେଲାଣି ସେହିଦିନୁ ବସନ୍ତରେ ମୃତ୍ୟୁ ସଂଖ୍ୟା ସମ୍ପୂର୍ଣ୍ଣ ଊଣା ହୋଇ ଯାଇଅଛି ।

ହରି—ବାଲ୍ୟଟୀକା ଥରେ ନେଲେ ଚିରଦିନପାଇଁ ନିଶ୍ଚିନ୍ତ ହେବ ?

ଡାକ୍ତର—ବାଲ୍ୟଟୀକା ନେଲେ ଆଉ ପ୍ରାୟ ବସନ୍ତ ହୁଏନାହିଁ । ତେବେ ଯଦି କାହାକୁ କ୍ୱଚିତ୍ ବସନ୍ତ ହୁଏ ତେବେ ତାହାର ନାନାବିଧ କାରଣ ଥାଏ ଅର୍ଥାତ୍ (୧) ଟୀକା ନେଇଥିଲେ ଯଦି ତାହା ସଫଳ ଅର୍ଥାତ୍ ଘା ହୋଇ ଟୀକା ଫାଟି ନଥାଏ । (୨) ବାଲ୍ୟଟୀକା ନେଲେ ୫ । ୬ ବର୍ଷ ପରେ ଆଉ ଥରେ ପୁଣି ଟୀକା ନେବାର ଆବଶ୍ୟକ ହୁଏ । କାରଣ ଅନେକ ସ୍ଥଳରେ ପୁରୁତନ ହେଲେ ଟୀକାର ଗୁଣ ନିଷ୍ଫଳ ହୋଇଥାଏ; ସୁତରାଂ ନୂଆଟୀକା ନେଇ ନଥିବାରୁ ବସନ୍ତ ହୋଇପାରେ । (୩) ଟୀକା ନେବାର ବୀଜ ଯଦି ଭଲ ଓ ଟଟକା ନଥାଏ ତେବେ ସେହି ବୀଜରେ ଟୀକା ନେଇଥିଲେ ସୁଦ୍ଧା ବସନ୍ତ ହୋଇପାରେ ।

ହରି—ବାଲ୍ୟଟୀକାରେ ଯଦି ଏତେ ସୁବିଧା ତେବେ ଲୋକମାନେ ସମସ୍ତେ କାହିଁକି ତାହାକୁ ନେବାକୁ ଆଗ୍ରହ କରନ୍ତି ନାହିଁ ?

ଡାକ୍ତର—ସହରର ଲୋକମାନେ ପ୍ରାୟ ସମସ୍ତେ ବୁଝିଅଛନ୍ତି ଯେ ବସନ୍ତ ରୋଗରୁ ରକ୍ଷା ପାଇବାର ଉତ୍କୃଷ୍ଟ ଉପାୟ ଟୀକା ନେବା

ବଳୁ ମୋଫସଲରେ ଏପରି ଅନେକ ଲୋକଅଛନ୍ତି ଯେଉଁମାନେ ନିତାନ୍ତ ଅଶିକ୍ଷିତ ଓ ଟୀକାର କଥା ବୁଝି ନଥିବାରୁ ଏବ ନାନାବିଧ କୁସଂସ୍କାରବିଶିଷ୍ଟ ଥିବାରୁ ଟୀକା ଦିଆ ବ୍ୟକ୍ତି ଗ୍ରାମକୁ ଆସିଲେ ସେମାନେ ଉପସ୍ଥିତ ନ ହୋଇ ଲୁଚିବୁଲନ୍ତି ଓ ଆପଣା ଛୁଆମାନଙ୍କୁ ଲୁଚାଇ ରଖନ୍ତି । କେହି୨ ଅନ୍ୟତ୍ର ପଳାଇ ଯାଆନ୍ତି । ଟୀକାଦାର ଗ୍ରାମରୁ ବିଦାୟ ହେଲେ ହେବେ ଯାଇ ଘରକୁ ଫେରି ଆସନ୍ତି । ଏପରି ଲୋକମାନେ ଆପଣା ଦୋଷ ଓ ଅଜ୍ଞାନପଣରୁ ବସନ୍ତରୋଗ ଓ ତାହା ସଙ୍ଗେ ମୃତ୍ୟୁକୁ ଘରକୁ ଡାକି ଆଣନ୍ତି । ଆମ୍ଭ ଡାକ୍ତରଖାନାରେ ଯେ ରଘୁଆ ମାଳୀ ଅଛି ତାକୁ ଡାକୁଛି, ତାହା ମୁହଁରୁ ଶୁଣିବ ତାଙ୍କ ଗାଁଅରେ କିପରି ଦୁର୍ଘଟଣା ଗତବର୍ଷ ଘଟିଥିଲା । ଟୀକା ନ ଦେଇ ପିଲାମାନଙ୍କୁ ଲୁଚାଇ ରଖିବାର ଫଳ କଣ ହେଲା ? ଡାକ୍ତର ତହୁଁ ରଘୁଆ ମାଳୀକୁ ଡକାଇଲେ ଏବଂ ସେ ଆସିଲାରୁ ତାକୁ ପଚାରିଲେ "ହିରେ ରଘୁଆ—ତମ ଗାଁରେ ସେ ଚଷା ପୁଅ କିପରି ମଲା ? ତୁ ସେଦିନ ମୋତେ କହୁଥିଲୁ ?"

ରଘୁଆ—ଆଜ୍ଞା, ତାହା ପୁଅକୁ ବସନ୍ତ ହୋଇଥିଲା ।

ଡାକ୍ତର—ହିଁ—କହୁଥାଅ—କାହିଁକ ହେଲା ତୁ କଣ ଜାଣୁ ?

ରଘୁଆ—ଆମ ଗାଁର ଗୋବିନ୍ଦ ଭୂୟାଁ ଜଣେ ବଡ଼ ଚଷା । ଧାନ, ଟଙ୍କା କରଜ ଦିଏ; ତେଜାରତି କରି ବେଶ ଦୁଇପଇସା ରୋଜଗାର କରେ, ଧନୀଲୋକ, ସେଥିପାଇଁ ସେ କାହାକୁ ମାନେ ନାହିଁ । ଗ୍ରାମର ଲୋକ ଅଧିକାଂଶ ତାହାର ଖାତକ, ସୁତରାଂ ସେମାନେ ସମସ୍ତେ ତାହାକୁ ଖାତିର ଓ ଭୟ କରନ୍ତି । ପ୍ରତିବର୍ଷ ଟୀକାଦାର ଗାଁକୁ ଆସେ,

ପିଲାମାନଙ୍କୁ ଟୀକା ଦେଇଯାଏ । ଗୋବିନ୍ଦ ଭୂୟାଁର ଗୋଟିଏ ପୁଅ, ସେ ଟୀକାଦାର ଦେଖିଲେ ଭୟରେ କାନ୍ଦି ୨ ପଳାଇ ଯାଏ । ବାପ ମା ତାହାର କାନ୍ଦଣା ଦେଖି ତାକୁ ଲୁଚାଇ ରଖନ୍ତି ଆଉ ଟୀକା ଦେଇ ଦିଅନ୍ତି ନାହିଁ । ପଚାରିଲେ କହନ୍ତି "ପୁଅ ତା ମାମୁଁ ଘରକୁ ଯାଇଛି" ଇତ୍ୟାଦି ; ଟୀକାବାଲା ଗ୍ରାମରୁ ବିଦାୟ ହୋଇଗଲେ ପୁଅ ଘରୁ ବାହାରେ । ଏପରି ହେଉଁ ୨ ସେ ପିଲା ବଡ଼ିଗଲା ; ଟୀକା ଆଉ କେବେ ନେଲା ନାହିଁ । ଗତବର୍ଷ ଗାଁରେ ବଡ଼ ବସନ୍ତ ଲାଗିଲା । ଟୀକାଦାରମାନେ ଆସି ସମସ୍ତଙ୍କୁ ଟୀକା ଦେଇଗଲେ । ଟୀକା ନେଇ ନଥିବା ଲୋକମାନଙ୍କ ମଧ୍ୟରୁ ଅନେକେ ମଲେ । କେହି ୨ ଅତି କଷ୍ଟରେ ବଞ୍ଚିଲେ କିନ୍ତୁ ମୁହଁ ହାତ ଗୋଡ଼ ସବୁ ବରଡ଼ୀବସା ପଡ଼ି ରହିଗଲା । ଭୂୟାଁ ପୁଅ ଟୀକା ନେଇ ନଥିବାରୁ ତାହାକୁ ବସନ୍ତ ହେଲା । ଗାଁଅର କବିରାଜ କ ଇଲାଜ ପଥ୍ୟ ଦେଲା ଏବଂ ବହୁକଷ୍ଟରେ ସେହି ଗେହ୍ଲାପୁଅ ବଞ୍ଚିଲା ସତ୍ୟ କିନ୍ତୁ ତାହାର ଦୁଇଚକ୍ଷୁ ଅନ୍ଧ ହୋଇଗଲା ।

ଡାକ୍ତର—ତାହାପରେ କଣ ହେଲା ? କଣ ସେ ପୁଅ ଆଜିପର୍ଯ୍ୟନ୍ତ ଅଛି ?

ଉଦୁଆ—ନା—ଆଜ୍ଞା—ବାପ ମାଆତ ପୁଅର ଅବସ୍ଥା ଦେଖି ହାୟ ୨ କଲେ । ଅନ୍ଧ ପୁଅର ଦୁଃଖ ଦେଖି ଆଉ ସହି ପାରିଲେ ନାହିଁ । ଡାକ୍ତର ଦେଖାଇଲେ, ସେ କହିଲେ "ବସନ୍ତ ରୋଗରୁ ଆଖି ହପ୍ଫୋଟି ନଷ୍ଟ ହୋଇ ଯାଇଛି, ତାହା ଆଉ କେବେହେଁ ଭଲ ହେବନାହିଁ । ତୁମ୍ଭମାନଙ୍କ ନିଜ ଦୋଷରୁ ଏପରି ହେଲା । ତୁମ୍ଭେମାନେ ଜାଣ ଗାଁଅରେ ଯଦି ବସନ୍ତ

ଲାଗିବ ସେବେ ସମସ୍ତେ ଟୀକା ନ ନେଇଥିଲେ ନିଶ୍ଚୟ ବସନ୍ତ ହେବ । ସେବେ ସୁଦ୍ଧା ତୁମ୍ଭମାନେ ପୁଅକୁ ଟୀକା ଦେଇନାହଁ କାହିଁକି" ? ରଘୁଆ କହିଲା—"ସେଭଳି ପିଲାଲୋକ ଟୀକାଦିଅ କଥା ଶୁଣିଲେ କାହିଁକି ଲୁଚି ପଳାଏ" ? ଡାକ୍ତର କହିଲେ "ସେ ସିନା ପିଲାଲୋକ ଥିଲା, ତୁମେତ ଆଉ ପିଲା ଥିଲନାହିଁ ? ଏବେ ତାହାର ଫଳ ଭୋଗକର ।"

ଡାକ୍ତର—ହଁ ଶେଷରେ କଣ ହେଲା ? କହିଯାଅ—

ରଘୁଆ—ଆଉ କଣହେବ ଅବଧାନ, ଦିନେ ପୁଅ ବାଡ଼ି ପୋଖରୀକୁ ମୁହଁ ଧୋଇବାକୁ ଯାଇଥିଲା, ଅନ୍ଧପୁଅ, ବାଟ ଦେଖି ପାରିଲା ନାହିଁ, ଗୋଡ଼ ଖସିଯାଇ ପାଣିରେ ପଡ଼ି ବୁଡ଼ିମଲା । ସେତେବେଳେ ବାପ ମାଆ କାନ୍ଦି ବୋବାଳି କରି କହିଲେ "ଗାଁର ଯେତେଲୋକ ଟୀକା ନେଲେ କେହି ମଲେନାହିଁ, ଆମ ପୁଅ ଟୀକା ନ ନେବାରୁ ସିନା ମଲା" !!

ଡାକ୍ତର—ଏ ଘଟଣା ଦେଖି ଗ୍ରାମବାସୀଙ୍କର କିଛି ଶିକ୍ଷା ହେଲା ନା ?

ରଘୁଆ—ହଁ—ସେହିଦିନୁ ସମସ୍ତେ ଜାଣିଲେ ଯେ ବସନ୍ତ ରୋଗରୁ ରକ୍ଷା ପାଇବାକୁ ହେଲେ ଟୀକା ନେବା ଏକମାତ୍ର ଉପାୟ । ଏବେ ଟୀକାଦାର ଗାଁକୁ ଆସିଲେ ସମସ୍ତେ ଛୁଆପିଲା ନେଇଆସି ଭିଡ଼ ପକାନ୍ତି । ଆଉ ଚୌକିଆ ପଠାଇ ତାଙ୍କୁ ଡାକିବାକୁ ହୁଏନାହିଁ ।

ଡାକ୍ତର—ରଘୁଆ, ଏବେ ତୁ ଯାଅ, ତୋ କାମ କରିବୁ ।

ରଘୁଆ ଚାଲିଗଲାରୁ ଡାକ୍ତର ବାବୁ ହରି ବାବୁଙ୍କୁ କହିଲେ "ଏବେ ଶୁଣିଲ ? ଟୀକା ନ ନେବାରୁ କିପରି ଭୟାନକ ଫଳ ହୁଏ । ଗ୍ରାମରେ ଯଦି ବସନ୍ତ ଲାଗିଥିବ ତେବେ ଅଟୀକା ଦିଆ କିମ୍ବା ପୁରୁଣା

ଟୀକାଦିଅ, ସମସ୍ତଙ୍କୁ ପୁଣି ଟୀକା ନେବାର ଆବଶ୍ୟକ । ଆଉ ନିଜ ଘରେ କିମ୍ବା ଘରପାଖ ପଡ଼ୋଶୀଘରେ ଯଦି ସମସ୍ତେ ଟୀକା ନେଇଥିବେ ତେବେ ସେ ଘରମାନଙ୍କରେ ସମସ୍ତ ସାନ ଛୁଆମାନଙ୍କୁ ଟୀକା ଦେଇ ପକାଇବା ଆବଶ୍ୟକ । ସାନ ଛୁଆବୋଲି ଅଟକାଇ ରଖିବାରୁ ସେମାନଙ୍କୁ ଆଗେ ବସନ୍ତ ଆକ୍ରମଣ କରେ ।

ହରି—କଣ, ସାନ ଛୁଆମାନେ ସୁଦ୍ଧା ଟୀକା ନେବେ ?

ଡାକ୍ତର—ହଁ—ଆମ୍ଭେମାନେ ଛମାସିଆ ଛୁଆଙ୍କୁ ସୁଦ୍ଧା ଟୀକା ଦେଉଛୁଁ । ବିଶେଷତଃ ଘରେ ଜଣେ କେହି ଟୀକା ନେଇଥିଲେ ସେ ଘରର କୌଣସି ସାନ ଛୁଆଙ୍କୁ ବାଦ ଦେବାର ଉଚିତ ନୁହେଁ ।

ହରି—ଏବେ ବସନ୍ତ ରୋଗରୁ ରକ୍ଷା ପାଇବାର ଉପାୟ କଣ ଅନୁଗ୍ରହ କରି କହନ୍ତୁ ।

ଡାକ୍ତର—ରୋଗ ଧରିଲେ ଭଲ ଡାକ୍ତର ଡାକି ତାହାର ଚିକିତ୍ସା ଅତି-ଶୀଘ୍ର କରିବା ଉଚିତ । ଯେପରି ବସନ୍ତ ନହେବ ସେଥି ସମ୍ବନ୍ଧରେ କେତୋଟି ବିଶେଷ ନିୟମ ଅଛି, ଅତି ସାବଧାନ ହୋଇ ସେସମସ୍ତ ପାଳନ କରିବା ଆବଶ୍ୟକ । ସରକାରୀ ବଡ଼ ଡାକ୍ତରମାନେ ସୁଦ୍ଧା ସେ ସମ୍ବନ୍ଧରେ ଯେଉଁସବୁ ନିୟମ ପ୍ରକାଶ କରି ଅଛନ୍ତି ତାହା ଜାଣି କାର୍ଯ୍ୟକଲେ ରକ୍ଷା ହୋଇ ପାରିବ ।

ହରି—ତେବେ ସେହିସବୁ ଆମ୍ଭମାନଙ୍କୁ କହନ୍ତୁ । ଆମ୍ଭେମାନେ ନୋଟ-କରି ରଖିବା ।

ଡାକ୍ତର—ସରକାରୀ ସାଧାରଣ ସ୍ୱାସ୍ଥ୍ୟ ବିଭାଗର ଡିରେକ୍ଟର ସାହେବ ବାହାଦୁର ଯେଉଁସବୁ ନିୟମାବଳୀ ପ୍ରଚାର କରି ଅଛନ୍ତି ତାହା ଓ ଅନ୍ୟାନ୍ୟ ସୁପ୍ରସିଦ୍ଧ ଡାକ୍ତରମାନେ ଯେଉଁ ସମସ୍ତ

ଉପଦେଶ ଦେଇଛନ୍ତି ତାହା ଏଠାରେ ସଂକ୍ଷେପରେ କହୁଅଛୁ ।

(୧) ବସନ୍ତ ରୋଗୀକୁ ଗୋଟିଏ କୋଠରୀରେ ଏକାକୀ ରଖିବ, ଏବଂ ସେବା କରିବା ପାଇଁ କେବଳ ଜଣେ କମ୍ବା ଦୁଇଜଣ ମାତ୍ର ସେ ଘରକୁ ଯିବା ଆସିବା କରି ପାରିବେ ।

(୨) କାହାରିକୁ ସେ ରୋଗ ଧରିଲେ ଅବିଳମ୍ବେ ସେ ଘରର ଅନ୍ୟାନ୍ୟ ସମସ୍ତଙ୍କୁ ଟୀକା ନେବାର ଆବଶ୍ୟକ । ସଙ୍ଗେ ସଙ୍ଗେ ଟୀକା ନେଲେ ଘରର ଆଉ କେହି ସେ ରୋଗରେ ଆକ୍ରାନ୍ତ ହୁଅନ୍ତି ନାହିଁ ।

(୩) ରୋଗୀର ଲୁଗାପଟା ଓ ବିଛଣା ଫୁଟନ୍ତା ପାଣିରେ ଅଥବା ପରିଷ୍କାରକ ଔଷଧରେ ( ଫେନାଇଲ ପାଣିରେ ) କିଛିକ୍ଷଣ ବୁଡ଼ାଇ ତତ୍‌ପରେ ନିର୍ମଳ ଜଳରେ ଧୋଇ ଖରାରେ ଶୁଖାଇ ଦେବ ।

(୪) ଜଣେ ଆକ୍ରାନ୍ତ ହେଲାକ୍ଷଣି ନିକଟସ୍ଥ ଥାନା ଅଥବା ଡାକ୍ତରଖାନାକୁ ଲୋକ ପଠାଇ ଟୀକାଦାର ଡକାଇ ଅନ୍ୟ ସମସ୍ତଙ୍କୁ ଟୀକା ଦେବ ଓ ରୋଗୀର ଲୁଗାପଟା ଧୋଇବାକୁ ପରିଷ୍କାରକ ଔଷଧ ଅଣାଇବ ।

(୫) ରୋଗ ବନ୍ଦ ହୋଇଗଲେ ସେହିଘରେ ଗନ୍ଧକ ଜ୍ୱାଳ ଶୋଧନ କରିବ । ଶୋଧନ କରିବାର ସହଜ ଉପାୟ—ଗୋରୁ ଗୋବରରେ ଗନ୍ଧକଚୂର୍ଣ୍ଣ ମିଶାଇ ଘସି ପ୍ରସ୍ତୁତ କରିବ । ଯେପରି ପ୍ରତି ଘସି ପଡ଼ାରେ ଅନ୍ତତଃ ଏକତୋଲା ପର୍ଯ୍ୟନ୍ତ ଗନ୍ଧକ ଚୂର୍ଣ୍ଣ ଥିବ । ଏହିପରି ଶଏ କମ୍ବା ଦୁଇଶଅ ଖଣ୍ଡ ଘସି ସେଘରେ କବାଟ ବନ୍ଦକରି ଜାଳିବ । ଆଉ କେତେକ

ଡାକ୍ତରମାନଙ୍କ ମତରେ ଧୂପ, ଧୂଣା, ଗୁଗ୍ଗୁଳ ବତୀ ଜଳାଇ ରୋଗୀର ଘର ସବୁବେଳେ ସୁଗନ୍ଧଯୁକ୍ତ କରି ରଖିବ ।

(୬) ଟୀକା ନେବା ଦ୍ୱାରା ଯେ ତୁମ୍ଭେ ବସନ୍ତରୁ ରକ୍ଷା ପାଇ ପାରିବ ଏକଥା ମନେ ରଖିବ । ପିଲାମାନଙ୍କୁ ବର୍ଷେ ହେବା ପୂର୍ବେ ସୁଦ୍ଧା ଟୀକା ଦିଆ ଯାଇପାରେ । ୧୪ ତମା ୧୫ ବର୍ଷ ହେଲେ ପୁଣି ଟୀକା ଦେବା ଆବଶ୍ୟକ । ତାହାହେଲେ ସେମାନଙ୍କୁ କେବେହେଁ ବସନ୍ତ ହେବନାହିଁ ।

(୭) ଯେତେବେଳେ ଗ୍ରାମରେ ବସନ୍ତ ଲାଗିଥିବ ସେତେବେଳେ ଗ୍ରାମର ସମସ୍ତେ ଟୀକା ନେଇଲେ ରୋଗ ଆକ୍ରମଣର ଆଶଙ୍କା ଦୂରୀଭୂତ ହୁଏ ।

(୮) ବସନ୍ତର ଘାଆକୁ ନିମପତ୍ର ସିଝାଇ ତାହାର ପାଣିରେ ଧୋଇବ । ରୋଗୀର ପାଣି ଚକ୍ଷୁରେ ପକାଇଲେ ଚକ୍ଷୁ ନଷ୍ଟ ହେବାର ଭୟ ନଥାଏ ।

ଡାକ୍ତର—ଏହି ନିୟମ ଗୁଡ଼ିକ ଅତି ସୁନ୍ଦର ଓ ଅତ୍ୟାବଶ୍ୟକୀୟ ; ସୁତରାଂ ପ୍ରତ୍ୟେକ ଗ୍ରାମବାସୀଙ୍କର ଏହି ସମସ୍ତ ପ୍ରତିପାଳନ କରିବା ଉଚିତ ।

ହରି—ଭଲକଥା—ଏହିସବୁ ନିୟମମାନ ଆମ୍ଭ ଗ୍ରାମରେ ପ୍ରଚଳିତ କରି ଦେବୁଁ । ଏହି ରୋଗ ଦେଖାଦେଲେ ଆଉ କ ବିଶେଷ ଉପାୟ ଅବଲମ୍ବନ କରିବା ଆବଶ୍ୟକ, ଅନୁଗ୍ରହ କରି କହନ୍ତୁ । ରୋଗୀର ସେବା ସୁଶ୍ରୂଷା ଓ ଚିକିତ୍ସା କିପରି କରିବାକୁ ହେବ ?

ଡାକ୍ତର—ଏ ରୋଗ ଯେବେ କାହାକୁ ଧରିଲେ ତାହାର ପ୍ରତି ବିଶେଷ ଯତ୍ନକରି ସେବା ସୁଶ୍ରୂଷା କରିବାକୁ ହେବ । ତାହାର ନିୟମ ଗୁଡ଼ିକ ସଂକ୍ଷେପରେ କହୁଅଛି ଶୁଣ ।

(୧) ରୋଗୀକୁ ଏକ ସ୍ୱତନ୍ତ୍ର ନିର୍ଜ୍ଜନ ଓ ଅନ୍ଧାରିଆ ଘରେ ଶୁଆଇ ରଖିବ । ବିଶୁଦ୍ଧବାୟୁ ଚଳାଚଳର ଉପାୟ କରିବ ।

(୨) ବାହାରର ଅନ୍ୟ କୌଣସି ଲୋକଙ୍କୁ ସେ ଘରେ ପ୍ରବେଶ କରିବାକୁ ଦେବନାହିଁ । ଯେଉଁ ଲୋକଙ୍କ ପୂର୍ବେ ବସନ୍ତ ହୋଇଥିଲା କିମ୍ବା ସେହିବର୍ଷ ଟୀକା ନେଇଥିବ କେବଳ ସେହି ଲୋକ ଯାଇ ରୋଗୀର ସେବା କରିବ ।

(୩) କାର୍ବଲିକ ଏସିଡ଼ ଓ ଧୂପ ଧୂଣା ପୋଡ଼ିଲେ ଅନେକ ଉପକାର ମିଳେ ।

(୪) ବସନ୍ତ ରୋଗୀର ଶଯ୍ୟା ଓ ପରିଧେୟ ବସ୍ତ୍ରାଦି ପୋଡ଼ିଦେବା ଉଚିତ ନହୁବା କ୍ଷାର ଜଳରେ ସିଦ୍ଧକରି ଶୁଖାଇବା ଉଚିତ । ସେଘରେ ଯେଉଁସବୁ କାଠର ଅସବାବ ପତ୍ର ଥିବ ସେସବୁ ଗରମ ଜଳରେ ଧୌତ କରିବ ।

(୫) ଯେ ଗ୍ରାମରେ ବସନ୍ତ ଲାଗିଥିବ ସେ ଗ୍ରାମକୁ ଯିବା ଉଚିତ ନୁହେଁ ।

(୬) ନିମ୍ବପତ୍ର ପାରିଦେଇ ବିଛଣା କରି ତାହା ଉପରେ ରୋଗୀକୁ ଶୁଆଇଲେ ଓ ନିମ୍ବଡାଳ ନେଇ ବିଞ୍ଚିଲେ ବସନ୍ତ ଶୀଘ୍ର ଶୀଘ୍ର ଶୁଖିଯାଏ ।

(୭) ବସନ୍ତ ପାଚି ଉଠିଲେ ବେଲକଣ୍ଟା ଦେଇ ପୂଜ ବାହାର କରିଦେବା ଆବଶ୍ୟକ । ଯଦି କିମ୍ବା ଘାଆ ଅଧିକ ହୋଇଥିଲେ ତାହା ଉପରେ ମଇଦା କିମ୍ବା ଆରାରୁଟ ଗୁଣ୍ଡ ଛିଞ୍ଚିଦେଲେ ଘାଆ ବଢ଼ି ପାରେ ନାହିଁ ।

(୮) ଡାକ୍ତରଖାନାରେ ବୁରସିକ ଏସିଡ଼ ମିଳେ, ତାହା ଘାଆ ମୁହଁରେ ଛିଞ୍ଚିଦେଲେ ଘାଆ ଶୀଘ୍ର ଶୁଖିଯାଏ ।

(୯) କଣ୍ଡୁଆପାଣି ଦେହରେ ବୋଳିହେଲେ, ଅଲିଭ ଅଏଲ, ଗ୍ଲିସରିନ, ଲାଇମ ଲିନମେଣ୍ଟ ଦେହରେ ମାଲିସ କଲେ ବସନ୍ତର ଦାଗ

ମିଳାଇ ଯାଏ । ଚକ୍ରପାଣି ଓ ନନ୍ଦୁଅଚେଲ ସମଭାଗରେ ଏକତ୍ର ମିଶ୍ରିତ କରି ତାହାକୁ ଭଲ ଘାଣ୍ଟି ସେଥିରେ ଭୂଲା ଘଷାଇ ବସନ୍ତ ଉପରେ ଲଗାଇଲେ ଦାଗ ରହେ ନାହିଁ ।

(୧୦) କନାଉ ଭଣ୍ଡାର ଅର୍ଥାତ ହିଲକା ପ୍ରଭୃତି ଏବଂ କମ୍ପା ଦୁଇ ଗ୍ରାମ ଖାଇଲେ ବସନ୍ତରୋଗ ଧରେନାହିଁ ବୋଲି କେତେକ ଡାକ୍ତରମାନେ କହୁ ଅଛନ୍ତି ।

ହରି—ଦେଶୀୟ କବିରାଜମାନେ ଏ ରୋଗ ସମ୍ବନ୍ଧେ କ ଉପଦେଶ ଦେଅନ୍ତି ?

ଡାକ୍ତର—ଯେଉଁ ଠାରେ ଡାକ୍ତର ମିଳନ୍ତି ନାହିଁ ସେଠାରେ କବିରାଜ-ମାନେ କେତେକ ପ୍ରକାର ଉପାୟ କରନ୍ତି କିନ୍ତୁ କେତେକ ପ୍ରକାର କୁସଂସ୍କାର କଥା ମୋଫସଲରେ ଶୁଣିଅଛୁ ; ଅର୍ଥାତ ବସନ୍ତ ରୋଗ ଧରଲେ ଲୋକମାନେ କହନ୍ତି "ତାକୁ ଠାକୁରାଣୀ ଧରଲାଣି, ତାହାର ଆଉ କୌଣସି ଉପାୟ କର ନାହିଁ, ଠାକୁରାଣୀ ରାଗିଯିବେ ଓ ବଂଶସାରା ସମସ୍ତେ ମରିବେ" ଇତ୍ୟାଦି କଥା ଗୁଡ଼ିକ ନିତାନ୍ତ ଅସାର ଏବଂ ଏପରି କରି ଅନେକ ଲୋକମାନେ ନଷ୍ଟ ହୁଅନ୍ତି । କବିରାଜମାନଙ୍କର ଦେଶୀୟ ଔଷଧରେ ମଧ୍ୟ ଅନେକ ଉପକାର ହୁଏ । ଯେଉଁ ସ୍ଥାନରେ କୌଣସି ଡାକ୍ତରୀ ଔଷଧ ମିଳେନାହିଁ ସେହି ସ୍ଥାନରେ ନିମ୍ନଲିଖିତ ସହଜପ୍ରାପ୍ୟ ଔଷଧ ବ୍ୟବହାର କଲେ ଯଥେଷ୍ଟ ଉପକାର ପାଇବାର ସମ୍ଭାବନା ଅଛି । କାରଣ ଏହି ଔଷଧ ଗୁଡ଼ିକ ପ୍ରସିଦ୍ଧ କବିରାଜମାନଙ୍କ ଦ୍ୱାରା ପରୀକ୍ଷିତ ହୋଇଅଛି ।

(୧) ଧଣିଆ, ପଲତା ଓ ହରିତକୀ ସମାନ ଭାଗରେ ନେଇ ମୋଟ ୨ ତୋଳା, ଅଧସେର ପାଣିରେ ସିଝାଇ ୪ ଛଟାଙ୍କ ପାଣି ରଖିବ।

ଓ ତାକୁ ଛାଣି ଗରମ ଥାଉଁ ୨ ସକାଳ ସନ୍ଧ୍ୟା ଖାଇଲେ ବସନ୍ତ ହୁଏ ନାହିଁ ।

(୨) ହରିତକୀର ବୀଜ ପୁରୁଷର ଦକ୍ଷିଣ ଓ ସ୍ତ୍ରୀଲୋକର ବାମ ବାହୁରେ ଧାରଣ କଲେ ଏ ରୋଗ ଧରିବାର ଭୟ ନ ଥାଏ । କଣ୍ଟକାରୀ ମୂଳ ସୁଦ୍ଧା ଏହିପରି ବ୍ୟବହୃତ ହୁଏ ।

(୩) କଣ୍ଟକାରୀ ଚେର-ଛାଲି ଚାରିଅଣା ଓଜନ ଓ ୨୧ ଗୋଟା ଗୋଲମରିଚ ବାଟି ବସନ୍ତ ଲାଗିଥିବା ସମୟରେ ଥରେମାତ୍ର ଖାଇଲେ ବସନ୍ତର ଭୟ ନ ଥାଏ ।

(୪) ନିମପତ୍ର, କଞ୍ଚାହଳଦ ଓ ରୁଦ୍ରାକ୍ଷ, ସମାନ ଭାଗରେ ନେଇ ଶୀତଳ ଜଳରେ ବାଟି ଥରେମାତ୍ର ଖାଇଲେ ଆଉ ବସନ୍ତ ହୁଏ ନାହିଁ । ଏସବୁ ପରୀକ୍ଷା କରି ଦେଖିବା ମନ୍ଦନୁହେଁ ।

ହରି—ବାବୁ ଆଉ ଗୋଟିଏ ବିଷୟ ଜାଣିବା ଆବଶ୍ୟକ ରୋଗୀକୁ କି ପଥ୍ୟ ଦିଆଯିବ ?

ଡାକ୍ତର—ମାଛ, ମାଂସ, ଲବଣ, ପିଆଜ, ଲଙ୍କା ପ୍ରଭୃତି ଅଧିକ ପରିମାଣରେ ଖାଇଲେ, ମଦ, ବ୍ରାଣ୍ଡି, ତାଡ଼ୀ, ପ୍ରଭୃତି ନିଶାଦ୍ରବ୍ୟ, ଅଧିକ ଶାକ, ଅମ୍ଳ ଅତ୍ୟଧିକ ଭୋଜନ ପାନ, ଦିବାନିଦ୍ରା, ରାତ୍ରି ଜାଗରଣ, ପଚା ଓ ବାସୀ ଖାଦ୍ୟ ପ୍ରଭୃତି ଏ ରୋଗ ଜନ୍ମିବାର କାରଣ ବୋଲି ନିର୍ଦ୍ଦିଷ୍ଟ ଅଛି । ଯେତେବେଳେ ବସନ୍ତ ଗ୍ରାମରେ ଲାଗିଥିବ ସେତେବେଳେ ଏସବୁ ଆହାର କରିବ ନାହିଁ । ଅଗ୍ନରୁଟି, ବାର୍ଲିପାଣି, ପୋଟଳ, କଞ୍ଚା କଦଳୀ, ପୋଟଳପତ୍ର, ଡିମ୍ବିରି ପ୍ରଭୃତିର ତରକାରୀ ଓ ସୁଅଢିଅ ଏ ସମୟରେ ବ୍ୟବହାର କରିବା ଅଧିକ ଉପକାରୀ । ତୃଷା ଲାଗିଲେ, ବାର୍ଲି ଓ ମସୁରିପାଣି, ଲେମ୍ବୁର ରସ, ମିଶ୍ରୀ ପାଣି ପ୍ରଭୃତି ଦେବ ।

ହରି—ଡାକ୍ତରବାବୁ, ଆପଣଙ୍କୁ ଅଶେଷ ଧନ୍ୟବାଦ ଦେଉଅଛୁଁ । ଏବେ ପାଣିବସନ୍ତ ଓ ମିଳିମିଳା ବିଷୟ କିଛି କହିବା ହେଉନ୍ତୁ ।

## ପାଣି ବସନ୍ତ ।

ଡାକ୍ତର—ପାଣି ବସନ୍ତ ନାମକ ବସନ୍ତ ରୋଗର ଏକ ସାନଭାଇ ଅଛି । ଯଦ୍ୟପି ଏହା ଗୋଟିଏ ସାମାନ୍ୟ ସ୍ପୋଟକ ଜାତୀୟପୀଡ଼ା ଓ ବସନ୍ତ ପରି ଏତେ ପ୍ରବଳ ନୁହେଁ ତଥାପି କେବେ୨ ସଂକ୍ରାମକ ଆକାର ଧାରଣ କରେ ।

ପ୍ରଥମେ ସାମାନ୍ୟ ଜ୍ୱର ହୋଇ ଦ୍ୱିତୀୟ ଦିନରେ ବକ୍ଷ, ମୁଖମଣ୍ଡଳ ଓ ପିଠିରେ କ୍ଷୁଦ୍ର୨ ବସନ୍ତ ବାହାରି ପଡ଼େ । ତୃତୀୟ ଓ ଚତୁର୍ଥ ଦିନରେ ସେଗୁଡ଼ିକ ଜଳପୂର୍ଣ୍ଣ ହୁଏ, କିନ୍ତୁ ପ୍ରାୟ କେବେହେଁ ପାଚିଯାଇ ପୂଜ ଜନ୍ମେ ନାହିଁ । ୫ କିମ୍ବା ୬ ଦିନ ପରେ ଆପେ୨ ଶୁଖିଯାଏ ଓ ତାହାପରେ ବସନ୍ତ ପର ଶରୀରରେ କୌଣସି ଦାଗ ରହେନାହିଁ । ଏହି ପୀଡ଼ା ଜୀବନରେ ପ୍ରାୟ କେବଳ ଥରେମାତ୍ର ହୋଇଥାଏ । ଏହି ପୀଡ଼ା ହୋଇ ଯଦି ତାହାସଙ୍ଗେ ଜ୍ୱର, ମୁଣ୍ଡବିନ୍ଧା ଓ କାଶ ପ୍ରଭୃତି ଲକ୍ଷଣ ଦେଖା ନ ଯାଏ ତେବେ ଚିକିତ୍ସାର କୌଣସି ଆବଶ୍ୟକ ହୁଏ ନାହିଁ । ସିର୍କା ଜଳରେ ମିଶାଇ ଦେହ ପୋଛିଦେବ ଓ ପୀଡ଼ା ସୁସ୍ଥ ନ ହେବା ପର୍ଯ୍ୟନ୍ତ ରୋଗୀକୁ ଗୃହ ଭିତରେ ରଖିବା ଉଚିତ । ଏ ରୋଗ ସଂକ୍ରାମକ ଥିବାରୁ ସାନପିଲାମାନଙ୍କୁ ରୋଗୀ ନିକଟକୁ କିମ୍ବା ତାହାଘରେ ପଶିବାକୁ ଦେବା ଉଚିତ ନୁହେଁ । ପଥ୍ୟ ସକାଶ ସାଗୁ, ଆରାରୁଟ, ଭାତମଣ୍ଡ ଓ ଦୁଧ ଦିଆଯାଇପାରେ । ଏ ରୋଗରେ ମତ୍ସ୍ୟ ଓ ମାଂସ ହାର ନିଷିଦ୍ଧ ଅଟେ । ରୋଗ ଉପଶମ ହେଲେ ରୋଗୀ

ଅତ୍ୟନ୍ତ ଦୁର୍ବଳ ହୋଇପଡ଼େ । ସେଥିଲାଗି ବଳକାରକ ପଥ୍ୟ, ଲୁଚନାଇନ ଓ କଡ଼ଲିଭର ଅଏଲ ବିଶେଷ ଉପକାରୀ । ଆରୋଗ୍ୟ ଲାଭର ପରେ କିଛିଦିନ ଉଷ୍ଣଜଳରେ ସ୍ନାନ କରିବା ବିଧେୟ ।

## ମିଳମିଳା ।

ଏରୋଗ ସୁଦ୍ଧା ବସନ୍ତ ରୋଗପରି ସଂକ୍ରାମକ । ସାଧାରଣତଃ ବାଲ୍ୟାବସ୍ଥାରେ ଅଧିକ ହେବାର ଦେଖାଯାଏ । ଘରର ଜଣେ ଛୁଆକୁ ଧରିଲେ ପ୍ରାୟ ଆଉସବୁ ଛୁଆଙ୍କୁ ଧରିଯାଏ । ପାଣି ବସନ୍ତ ପରି ଜୀବନରେ କେବଳ ଥରେମାତ୍ର ହେବାର ଦେଖା ଯାଇଅଛି । ରକ୍ତ ବିଷାକ୍ତ ହୋଇ ଏ ରୋଗ ଜନ୍ମେ । ପୀଡ଼ାର ପ୍ରଥମାବସ୍ଥାରେ ସର୍ଦ୍ଦି, ନାକବାଟେ ଜଳପଡ଼ିବା, ଘନ୨ ଛିଙ୍କ, କାଶ, ଚକ୍ଷୁ ଆରକ୍ତ ଓ ଜଳପୂର୍ଣ୍ଣ ଓ କେବେ୨ ଚକ୍ଷୁର ପତା ଫୁଲିଯାଇ ଆଲୋକ ଅସହ୍ୟ ହୁଏ । ଗଳାର ସ୍ୱର ଭାଙ୍ଗିଯାଏ ଏବଂ ତତ୍ପରେ ଜ୍ୱର ଆସେ । ଜ୍ୱର ହେବାର ଚତୁର୍ଥ ଦିନରେ ଅଳ୍ପ ଲାଲ ବର୍ଣ୍ଣର ମସୂରପରି କ୍ଷୁଦ୍ର୨ ବ୍ରଣ, ମୁହଁ, କପାଳ, ବେକ ଓ ତତ୍ପରେ ବକ୍ଷ ଓ ହସ୍ତ ପଦାଦିରେ ପ୍ରକାଶ ପାଏ । ବ୍ରଣ ବାହାରି ଗଲେ ପ୍ରାୟ ୩।୪ ଦିନ ମଧ୍ୟରେ ଜ୍ୱର ଛାଡ଼ିଯାଏ । ଯଦି ଉଦରାମୟ, ଝାଡ଼ା, ନିଉମୋନିଆ, ବ୍ରୋଙ୍କାଇଟିସ ହେବ କେବେ ଏ ରୋଗ କଠିନ ବୋଲି ଜ୍ଞାନ କରିବାକୁ ହେବ ଓ ଡାକ୍ତରଙ୍କ ପରାମର୍ଶ ଗ୍ରହଣ କରିବ । କୋଷ୍ଠବଦ୍ଧ ଥିଲେ ୨ ଡ୍ରାମ କଡ଼ାତେଲ ଖୁଆଇବ । ରୋଗୀକୁ କେବେହେଁ ଶୀତଳ ବାୟୁ କିମ୍ବା ଆଲୋକ ଲଗାଇ ଦେବନାହିଁ । ମତ୍ସ୍ୟ, ମାଂସ ଏ ରୋଗରେ ଖାଇବା ନିଷିଦ୍ଧ ଅଟେ କିନ୍ତୁ ଯଦି ନିଉମୋନିଆ ହେବ ଓ ଅତ୍ୟନ୍ତ ଦୁର୍ବଳ ହେଲେ ଦୁଗ୍ଧ ଓ ମାଂସର କ୍ୱାଥ ଆବଶ୍ୟକ ହେବ ଆଉ ଯଦି ଉଦରାମୟ ଥିବ, କିଛି ଚୂନପାଣି ଦୁଧରେ

ସହିତ ମିଶାଇ ଦେଲେ ଉପକାର ହେବ । ରୋଗ ମୁକ୍ତ ହେଲା ଉତ୍ତାରୁ ଚନ୍ଦନ କଡ଼ଲଗର ଅଧିଲ ଖୁଆଇଲେ ରୋଗୀ ଶୀଘ୍ର ସବଳ ହୋଇ ଉଠେ । ପଥ୍ୟରୂପେ କେବଳ ସାଗୁ, ବାର୍ଲି ଓ ଅରୋରୋଟ ଦିଆଯାଇ ପାରେ ।

ଡାକ୍ତର—ଏବେ ତ ତୁମ୍ଭେମାନେ ସବୁ ଶୁଣିଲ ଆଉ କିଛି ଜାଣିବାର ଅଛି ତ ଏତେବେଳେ କୁହ । ନହୁବା ଘରକୁ ଯାଇ ଏସବୁ ବିଷୟ ଗ୍ରାମରେ ଆଲୋଚନା କରି ଗ୍ରାମବାସୀମାନଙ୍କୁ ସାବଧାନ କରିଦେବ ।



ସମାପ୍ତ ।

